ଫାଲ୍ଗୁନ 1914 (ମାର୍ଚ୍ଚ 1993)



Alimalika (ORIYA)

ମୂଲ୍ୟ : 12/- ଟଙ୍କା

Price Rs. 12.00

ନିର୍ଦ୍ଦେଶକ, ପ୍ରକାଶନ ବିଭାଗ, ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟ, ଭାରତ ସରକାର, ପାଟିଆଲା ହାଉସ, ନୂଆଦିଲ୍ଲୀ-110001ଙ୍କ ଦ୍ୱାରା ପ୍ରକାଶିତ ।

ବିକ୍ରୟ କେନ୍ଦ୍ର—ପ୍ରକାଶନ ବିଭାଗ

- ସୁପର ବଜାର, କନଟ ସର୍କସ, ନୂଆଦିଲ୍ଲୀ-110001, ଫୋନ : 3313308
- କମର୍ସ ହାଉସ, କରିମଭାଇ ରୋଡ, ବାଲାର୍ଡ ପିଅର, ବମ୍ବେ—400038, ଫୋନ : 2610081
- 8, ଏସପ୍ଲାନେଡ ରୋଡ, କଲିକତା—700069, ଫୋନ : 286696
- ଏଲ.ଏଲ.ଏ ଅଡିଟୋରିୟମ, ଅନ୍ନାସଲାଇ, ମାଡ୍ରାସ—600002, ଫୋନ : 867643
- ବିହାର ରାଜ୍ୟ ସହକାରୀ ବ୍ୟାଙ୍କ ବିଲଡିଂ, ଅଶୋକ ରାଜପଥ, ପାଟନା—800004, ଫୋନ : 653823
- ଗଭର୍ଣ୍ଣମେଣ୍ଟ ପ୍ରେସ ନିକଟ, ପ୍ରେସ ରୋଡ, ଥିରୁଭନନ୍ତପୁରମ୍—695001, ଫୋନ : 68650
- 10 ବି, ଷ୍ଟେସନ ରୋଡ, ଲକ୍ଷ୍ନୌ—226019, ଫୋନ : 245785
- ଷ୍ଟେଟ ଆରକ୍ୟୋଲୋଜିକାଲ ମିଉଜିୟମ ବିଲଡିଂ, ପବ୍ଲିକ୍ ଗାର୍ଡ଼େନ, ହାଇଦ୍ରାବାଦ—500004, ଫୋନ : 236393

ଡେଭଲ ଅଫସେଟ ଓ୍ୱର୍କସ, ଖଜୁର ରୋଡ, କରୋଲବାଗ, ନୂଆଦିଲ୍ଲୀଙ୍କ ଦ୍ୱାରା ମୁଦ୍ରିତ
ଫୋନ : 7510455, 524200

# ପ୍ରକାଶକୀୟ

ପ୍ରକାଶନ ବିଭାଗ ପକ୍ଷରୁ ଏ ପର୍ଯ୍ୟନ୍ତ ପ୍ରାୟ ହିନ୍ଦୀ ଓ ଇଂରାଜୀ ଭାଷାର ମୌଳିକ ପୁସ୍ତକ ପ୍ରକାଶ ପାଉଥିଲା । ନିକଟରେ ଭାରତର ଅନ୍ୟାନ୍ୟ ଭାଷାମାନଙ୍କରେ ମୌଳିକ ପୁସ୍ତକ, ବିଶେଷ ଭାବେ ଶିଶୁ ସାହିତ୍ୟ, ପ୍ରକାଶର ନିଷ୍ପତ୍ତି ନିଆଯାଇ ଏହି ଶୃଙ୍ଖଳାରେ ଆସାମୀ, ପଞ୍ଜାବୀ, ତେଲୁଗୁ, କନ୍ନଡ, ତାମିଲ, ମଲୟାଲମ, ବଙ୍ଗଳା, ଗୁଜରାଟୀ, ମରାଠୀ ଓ ଉର୍ଦ୍ଦୁ ଇତ୍ୟାଦି ଭାଷାରେ କେତୋଟି ବହି ପ୍ରକାଶ ପାଇଛି । ଏହି ପର୍ଯ୍ୟାୟର ପ୍ରଥମ ଓଡ଼ିଆ ପୁସ୍ତକ ହେଉଛି 'ଆଲିମାଲିକା' ଏବଂ ଏହାର ଲେଖକ ହେଉଛନ୍ତି ଓଡ଼ିଶାର ପ୍ରଖ୍ୟାତ ଲେଖକ ଡାଃ ଜଗନ୍ନାଥ ପ୍ରସାଦ ଦାସ । ଆନନ୍ଦର ବିଷୟ ଯେ ଏହି ବହିଟି କିଶୋରମାନଙ୍କ ପାଇଁ ଉଦ୍ଦିଷ୍ଟ ।

ଜଣେ ସୁପ୍ରସିଦ୍ଧ ଓଡ଼ିଆ ଲେଖକଙ୍କର କିଶୋରମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକଟିକୁ ଆମର ପ୍ରଥମ ଓଡ଼ିଆ ପ୍ରକାଶନ ଭାବରେ ପାଠକମାନଙ୍କ ହାତରେ ଦେଇ ପାରିଥିବାରୁ ଆମେ ଗର୍ବ ଅନୁଭବ କରୁଛୁ । ଆଶା, ବହିଟି କେବଳ କିଶୋର ନୁହେଁ ଅନ୍ୟାନ୍ୟ ପାଠକମାନଙ୍କ ମଧ୍ୟରେ ମଧ୍ୟ ଆଦୃତ ହେବ ।

ଡାଃ ଶ୍ୟାମ ସିଂହ ଶଶି

# ନାଟର ଗୋବର୍ଦ୍ଧନ



ବେଙ୍ଗ କରୁଥାଏ     କଟର କଟର
ହାତୀ ଚଢ଼ିଯାଏ ମଟର,
ଗଛ କୋରଡ଼ରେ     ପେଚା ଓ ମାଙ୍କଡ଼ୀ
ଗୋବର୍ଦ୍ଧନ ସବୁ ନାଟର ।

# ବିଲୁଆ ନନା




ଖରା ହେଉଥିଲା     ବର୍ଷା ହେଉଥିଲା
ବରବେଶ ହୋଇ ବିଲୁଆ ନନା
ବାହା ହେବ ବୋଲି     ବାହାରିବା ବେଳେ
କିଏ ସେ କହିଲା ପଛକୁ ଅନା ।

ପଛକୁ ଅନାଇ     ବିଲୁଆ ଦେଖିଲା
ଘରଟି ତାହାର ଗଲାଣି ପୋଡ଼ି
ଠିକ କଲା ତେଣୁ     ଏଥର ସେ ଯିବ
ଫାୟାର ବ୍ରିଗେଡ୍ ଗାଡ଼ିରେ ଚଢ଼ି ।

# ଭାଗୀରଥି ଭାଇନା




ଭୀମଖୋଲର ଭାଗୀରଥି ଭାଇନା
ବାହାରିଥିଲେ ଯିବେ ବୋଲି ଚାଇନା
ପାଇଲେ ନାହିଁ ଭିସା
ତଥାପି ବୁଲା ନିଶା
'ଜୁ'ରେ ଯାଇ ଦେଖି ଆସିଲେ ହାଇନା ।

# ସଦାନନ୍ଦ ଶତପଥୀ



ଶରଣକୁଳର ବାବୁ ସଦାନନ୍ଦ ଶତପଥୀ
ଯାଉଥିଲେ ଚଢ଼ି ଦିନେ ତାଙ୍କ ନୁଆ ଫଟଫଟି
ଟ୍ରାଫିକ୍ ଆଲୁଅ ଲାଲ
ତାକୁ ସିଏ ହେଲେ ପାର -
ଏପରି ଭାବରେ ବାବୁ ପାଇଗଲେ ସଦ୍‌ଗତି ।

# ଦୁଇ ଦାସ




ଜାତି ପ୍ରେମ ବହ୍ନିରେ ଦେଲେ ଝାସ
ମିଷ୍ଟର ଦାସ ;
ଦେଶ ମାଟିରେ ମିଶାଇ ଦେଲେ ପ୍ରାଣ
ଦାସ ଆପଣ ।

# ଡର




ଛାଗର ଡର ବାଘକୁ
ଫାଗକୁ ଡରେ ବାଘ
ଫାଗ ଡରିଥାଏ ଛାଗକୁ
ତିନିହେଁ ତିନିଙ୍କ ଆଗ ।

# ଖଣ୍ଡା ନାକ





ଖଣ୍ଡା ଭଳି ନାକ
ସେ ହେଉଛି ନାୟକ;
ନାକ ଉପରେ ଖଣ୍ଡା
ସେ ହେଉଛି ଗଣ୍ଡା

# ଚିଠି




ଟଙ୍କା ପାଇଁ ବାପାଙ୍କୁ ସେ ଲେଖିଥିଲା ବିକଳେ
ଚିଠିଟି ପଠାଇଥିଲା ଏକ୍ସପ୍ରେସ ଡାକରେ,
ତିନିମାସ ଚାହିଁ ଚାହିଁ
ଅନେକ ମୋହର ନେଇ
ସେଇ ଚିଠି ପହଞ୍ଚିଲା ଫେରି ତା' ପାଖରେ

# ବୁଲୁ ପଟନାୟକ




ବଲାଙ୍ଗୀରପାଟନାର ବୁଲୁ ପଟନାୟକ
ଯାଇଥିଲା ବମ୍ବେକୁ ହେବା ପାଇଁ ନାୟକ,
ହିରୋ ହେବା ନୋହିଲା
ତଥାପି ସେ ରହିଲା -
ହୋଇ ଯାଇ ପାରେ ଯଦି ପ୍ଲେବ୍ୟାକ ଗାୟକ !

## ଓଡା ବାବୁ




ଆସିକାର ଓଡାବାବୁ ଖୋଲିଥିଲେ କମ୍ପାନୀ
ନାଁରୁ ଭାବିଲେ ଲୋକେ ଓସାକାର ଜାପାନୀ ;
ଅତି ଖୁସି ହୋଇ ଓଡା
ଶିଖିଲେ ଜାପାନୀ କଥା :
ଓହାଇଓ ଗୋଜାଇମାସୁ ଆରିଗାତୋ ତାମାନୀ ।

# ତିନି ରାୟ



ତିନି ଜଣ ରାୟ ଥିଲେ ଓଡ଼ିଶାରେ ଏକଦା
କଲମ ତାଙ୍କର ଚାଲୁଥିଲା ସଦା ସର୍ବଦା ।
ଲେଖିଲେ ରାମଶଙ୍କର କାଞ୍ଚିକା-
ବେରୀ ଏବଂ ରାଧାନାଥ ଚିଲିକା
ଗୌରୀଶଙ୍କରଙ୍କର ଦୀପିକା
କହିଲେ ଓଡ଼ିଆ ଲୋକେ ; ବାହ୍ୱା ବା ! ବାହ୍ୱା ବା !





## ଜନ୍ତୁ ପରନ୍ତୁ

ଘୁଷୁରି ଘୁଷୁରୁଥାଏ
ଚିତା ବାଘ ଚିତା କାଟେ
ଶାଗୁ ଖାଏ ଶାଗୁଣା
ମାଙ୍କଡ଼ ମାଙ୍କଡ଼ଚିତ
ଚଟିଯାଏ ଚଟିଆ
ଗଧ ଯାଏ ଗାଧୋଇ
କପି ବସି କପି କରେ
ହାତ କରି ନିଏ ହାତୀ
ଝିଙ୍କି ନିଏ ଝିଙ୍କ
ହଂସା ଉଡ଼େ ହଂସର

ବାର ବାଜେ ବାରହ୍ନାର
ପାରା ଚଢ଼େ ପାରାର
କୁଆ କୁଆମଇତା
ଭରତିଆ ଭରତା ।
ଓଲୁବନେ ଉଲୁକ
ପେଚ କଷେ ପେଚକ ।
ବୁଲୁ ଥାଏ ବୁଲବୁଲ
ମଶା ହୁଏ ମଶଗୁଲ ।
ଓଟ ନିଏ ଓଟାରି
ଶାରୀ କହେ, ସରି !





# ଉତ୍ତମ ମଧ୍ୟମ




କେଉଁ ଡାକଟି ସବୁଠୁ ଖର
କୁକୁର କହିଲା, ଭୋ ଭୋ
କେଉଁ ତମାଖୁ ସବୁଠୁ ଭଲ
ବିଲୁଆ କହିଲା, ହୁକା ହୋ ।

କେଉଁ ଗୀତଟି ସବୁଠୁ ମିଠା
ବେଙ୍ଗ କହିଲା, କଟର କେଁ
କେଉଁ ମାସଟି ସବୁଠୁ ଚିଟା
ଛେଳି କହିଲା, ମେ ମେ ।

# କାଉ କାଉ




ଭୀଷଣ ଭୋକରେ ହାଉଁ ହାଉଁ
କାଉ କରୁଥିଲା ରାଉ ରାଉ
କବି ତା' ପାଇଁ ଖୋଜି ଆଣି ଦେଲା
ଚୀନା ହୋଟେଲରୁ ଚାଉ ଚାଉ;
କାଉ ବି ଚାଲାକ କବି ମନ ବୁଝି
ଖାଇ ଦେଲା ତାକୁ ଟାଉ ଟାଉ ।

# ତିନି ମଞ୍ଚିକା



ତିନି ମଞ୍ଚିକା
ପର୍ବତ ଉପରେ ବସି ରହିଥାଏ
ସଞ୍ଚି ସଞ୍ଚିକା ।
ଦୁଇ ଦୁବଲିଆ ପାଖରେ ପାଇଲେ
ଚୋବାଇ ଖାଏ
ଚାରି ଚୁଲିଆକୁ ଦୁରରୁ ଦେଖିଲେ
ପଳାଇ ଯାଏ
ଘୁଞ୍ଚି ଘୁଞ୍ଚିକା ।
ପର୍ବତ ଖୋପରେ ଲୁଚି ରହିଥାଏ

ତିନି ମଞ୍ଚିକା
ତିନି ମଞ୍ଚିକା



# ପ୍ରଫେସର କର



ଥିଲେ ଖର ପ୍ରକୃତିର ପ୍ରଫେସର କର
ପିତ୍ତ ଚଢୁଥିଲା ସଦା ମଥାକୁ ତାଙ୍କର;
ରାଗେ ହୋଇ ଗରଗର
ମୁଣ୍ଡରୁ ଛିଣ୍ଡାନ୍ତି ବାଳ,
ଅତି ଶୀଘ୍ର ହୋଇଗଲେ ସମ୍ପୂର୍ଣ୍ଣ ଟାଙ୍ଗର ।

# ନାମ ବନାମ





ସିଂହର ଶିଙ୍ଘ ନାହିଁ
ହାତ ନାହିଁ ହାତୀର
ବଳଦର ବଳ ନାହିଁ
ପାତ ନାହିଁ ପାତିର ।

ଛାର ନୁହେଁ ଛାରପୋକ
ଥୋଡ଼ ନାହିଁ ଥୋଡ଼ାର
ଭଲ ନୁହେଁ ଭଲ୍ଲୁକ
ଖାଲି ଦେହ ଘୋଡ଼ାର ।



ଗଣ୍ଡା ପାଖରେ ନାହିଁ
କଡ଼ାଏ ବି କଉଡ଼ି
ବସି ରହିଥାଏ ଶୁଆ
ଗୋ ଆଡ଼େ ଦଉଡ଼ି ।



# ଡାକବଙ୍ଗଳାରେ ରାତି




ବିଛଣା ଉପରେ ଶୋଇ ଲିଭାଇଛି ଲଣ୍ଠନ
ଓହ୍ଲାଇଲେ ଦେଢ଼ ଲକ୍ଷ ମଶାଙ୍କର କ୍ୱାଡ୍ରନ
ଧରିଲେ ଉଡ଼ାଇ ନେବେ ସାଥିରେ
ଭାଗ୍ୟକୁ ମତେ ଟାଣି ରଖିଲେ
ବିଛଣାର ଦୁଇ ଲକ୍ଷ ଓଡ଼ଶଙ୍କ ପଲଟଣ ।

# ପରୀକ୍ଷା




ସଂସ୍କୃତ ପରୀକ୍ଷାରେ ଗୋ-
ମହିଷାଦି ଥିଲେ ପଶୁ ସକଳ
ମାଷ୍ଟରଙ୍କୁ କହିଲା, ଭୋଃ !
ପାସ କଲା ଏକମାତ୍ର କୁକୁର ।

# ପଠାଣି ସାମନ୍ତ




ପଠାଣି ସାମନ୍ତ
ଲେଖୁଥିଲେ ଦେଖୁଥିଲେ ଯାହା ଯେମନ୍ତ ।
ପୃଥିବୀ ସ୍ଥିର, ସୂର୍ଯ୍ୟ ବୁଲୁଥାଏ
ଦେଖିଲେ ଷୋଳ ପଣ
ଚାକ୍ଷୁସ ପ୍ରମାଣ ନେଇ ଲେଖିଲେ
ସିଦ୍ଧାନ୍ତ ଦର୍ପଣ ।




ବିଲାତୀ କୁକୁର କହିଲା, ବାଓ ୱାଓ -
ତା ସାହେବ କହିଲେ, ନାଓ ନାଓ !
ଦେଶୀ କୁକୁର କହିଲା, ଭୋ, ଭୋ -
ତା ଖାଉନ୍ଦ କହିଲା, ଓଃ ହୋ !

# ପୋଡ଼ା କପାଳ

ଯେତେ ତାକୁ ଶିଖାଇଲେ କୁକୁଡ଼ୁ କୁଁ
କହିଲା ସେ କକ୍-ଏ-ଡୁଡଲ୍ ଡୁ ।
ଫୁଟାଣିଆ କୁକୁଡ଼ା
ଖାଉ ଥା ଉଖୁଡ଼ା
ତନ୍ଦୁରୀ ଭାଗ୍ୟରେ ନାହିଁ ତୁ ହେବୁ ଷ୍ଟୁ ।



# ରାଷ୍ଟ୍ର ଭାଷା



ରାଷ୍ଟ୍ର ଭାଷା ଶିଖି ନୂଆ ନୂଆ,
ବିଲୁଆ କହିଲା, କ୍ୟା ହୁଆ ?
ପେଚା କହିଲା, ହାଁ, ହାଁ, ହୁଁ
ବିରାଡ଼ି କହିଲା, ମୈଁ ଆଉଁ ?

# ଛ ମାଣ ଆଠ ଗୁଣ୍ଠ

ଫକୀର ମୋହନ ସେନାପତି
ଦେଖିଲେ ତିନି ଦୁଷ୍ଟମତି :

ରାମଚନ୍ଦ୍ର ମଙ୍ଗରାଜ
ଅତି ବଡ଼ ମାମଲାବାଜ ।
ଚମ୍ପା ସାନ୍ତାଣୀ ହରକଳା
ମୁଣ୍ଡରେ ପାପ ବୁଦ୍ଧି ଭରା ।
ତାର ଅନୁଚାରୀ
ଗୋବିନ୍ଦ ଭଣ୍ଡାରୀ ।

ଯାହାକୁ ଯେପରି ଶାସ୍ତି :
ମଙ୍ଗରାଜର ମୁଣ୍ଡ ପିଟି
ଚମ୍ପା ସାନ୍ତାଣୀ ତଣ୍ଟି କାଟି
ଗୋବିନ୍ଦକୁ ଦେଇ କୁମ୍ଭୀର ପାଟି,
ତିନିଙ୍କର କଲେ ପରମଗତି
ଫକୀର ମୋହନ ସେନାପତି ।

# ଚାତକ ଚକୋର



ଚାତକ ଚକୋର ଦୁହେଁ
ପକ୍ଷୀ ଅତି ଭିନ୍ନ-
ଜଣେ ଯଦି ମେଘ ଚାହେଁ
ଜଣେ ଚାହେଁ ଜହ୍ନ ।

